# ମହାନଦୀ କ'ଣ ବୁଝେଁ?



ଡ଼କ୍ଟର ବନମାଳୀ ବାରିକ

# ମହାନଦୀ କ'ଣ ବୁଝେ ?



ଡ଼କ୍ଟର ବନମାଳୀ ବାରିକ

ମୟୂର ପବ୍ଲିକେସନସ୍, ଭୁବନେଶ୍ୱର

ଡ଼କ୍ଟର ବନମାଳୀ ବାରିକ
ଇଡ଼ିଦା (ବସ୍ତା)
ସଂପର୍କ - ଲକ୍ଷ୍ମୀସାଗର (ଉପର ସାହି), ଭୁବନେଶ୍ୱର -୬
ପ୍ରଥମ ପ୍ରକାଶ - ୨୦୦୮
ପ୍ରକାଶକ - ମୟୂର ପବ୍ଲିକେଶନ୍ସ, ଭୁବନେଶ୍ୱର-୧
ପ୍ରଚ୍ଛଦ - ଅଶ୍ୱିନୀ କୁମାର
ଡ଼ିଟିପି ଓ ମୁଦ୍ରଣ - ଡି-ନେଟ୍, ଭୁବନେଶ୍ୱର-୧
୨୦୦୮
ମୂଲ୍ୟ - ୩୫/-

**Dr. Banamali Barik**
IRDA (Basta)
Contact - Laxmisagr (Upper Sahi), BBSR-6
First Edition - 2008
Publisher - Mayur Publications, Bhubaneswar-1
Cover - Aswini Kumar
D.T.P & Printing - D-Net, Bhubaneswar-1
2008
Price - 35/-

## ସୂଚୀପତ୍ର :

# ଉତ୍ସର୍ଗ

ଶ୍ରୀଯୁକ୍ତ ନୀଳଲୋହିତ ସିଂହଦେଓ (ଖଡ଼ିଆଲ)

ମହୋଦୟେଷୁ---

# -ନିଜ କଥା-

ଏଇଟି ମୋର ପଞ୍ଚମ କବିତା ସଂକଳନ ।

'ମହାନଦୀ କ'ଣ ବୁଝେ ? - କବିତାଟି ମୋର ପ୍ରଥମ ସଂକଳନରେ ସ୍ଥାନିତ ହୋଇଥିଲା । ଜାଣି ନଥିଲି ଯେ ପରେ ପରେ ମହାନଦୀକୁ କେଇଥର ଭେଟିବି ଏବଂ ଆଉ କେତୋଟି କବିତା ଲେଖି ପାରିବି । କିଂତୁ ଯେତେବେଳେ ତାକୁ ଭେଟିଛି ନୂଆ ନୂଆ ଅନୁଭବ ମିଳିଛି । କଣ୍ଟିଲୋ - ନୀଳ ମାଧବ ବେଢ଼ାରୁ ମହାନଦୀକୁ ଦେଖିଛି । ଜଗନ୍ନାଥଙ୍କ ଗାଦିରୂପ ମନେ ପଡ଼ିଛି । ବିଦ୍ୟାପତି ଓ ଲଳିତା ମୋର ସ୍ମୃତି ପଟରେ ଉଙ୍କି ମାରିଛନ୍ତି । ସତ୍ୟ/ମିଥ୍ୟା ଖୋଜିବାର ଅବକାଶ ଉଠିନି । ସେହିପରି ସୋନପୁର ରାଜ ଉଆସରୁ ମହାନଦୀ ଦେଖିଲି । ନଦୀରେ ନୌକା ବିହାର ବି ହେଲା । ନଦୀ ଘାଟର ପଥର ପାବଚ୍ଛରେ ସ୍ନାନରତା ରାଜନନ୍ଦିନୀର ଛବି ମାନସପଟରେ ଆଙ୍କି ହୋଇଗଲା । ମାନସିଂହଙ୍କ କବିତାର ଧାଡ଼ିସବୁ ମନେ ପଡ଼ିଲା । ତା ସାଂଗକୁ ବି ମନେ ପଡ଼ିଲା । ଅଧ୍ୟାପକ ଚିନ୍ତାମଣି ବେହେରା । ଦରଦୀ କବି ଓ ଗଦ୍ୟର ଯାଦୁଗର । ଯିଏ ତାଙ୍କର ଛାତ୍ର ହୋଇଛି ସେ ଜାଣିଛି ତାଙ୍କ ପାଠ ପଢ଼ାର ମହିମା, ଶବ୍ଦର ମହିମା, ଜ୍ଞାନର ମହିମା । ମୁଁ ତାଙ୍କର ଅଧମ ଛାତ୍ର । ତାଙ୍କର ଇଚ୍ଛାର ସୀମାକୁ ଛୁଇଁବା ସହଜ ନୁହେଁ । ହାୟ, ସେ ଆଜି ଆମ ଗହଣରେ ନାହାଁନ୍ତି ।

ମହାନଦୀ ବଂଧ ଉପରେ ଠିଆହୋଇ ନଦୀର ଦୁଇ ପାର୍ଶ୍ୱକୁ ଦେଖିଛି । ଜଳମଗ୍ନ ଭୂଭାଗର ଇତିହାସ ଆଖି ଆଗରେ ଭାସି ଉଠିଲା । କବିତାର ଗତି ବେଳେ ବେଳେ ନିଜ ଆୟତ୍ତରେ ନଥାଏ । କ'ଣ ଭାବୁ ଭାବୁ କ'ଣ ଲେଖା ହୋଇଯାଏ । ସେହିପରି ଘଣ୍ଟେଶ୍ୱରୀ ପୀଠରେ ମହାନଦୀକୁ ଦେଖିବାର ସୁଯୋଗ ମିଳିଲା । ସମଗ୍ର ପରିବେଶ ଘଣ୍ଟାମୟ । ପାଖରେ ଗଭୀର ଜଳ । ପାଖରେ ତିଖ ପାହାଡ଼ । ଦୂରକୁ ଦିଗନ୍ତ ବିସ୍ତାରୀ ଶିଳା ବଂଧୁର ମହାନଦୀ

ଶଯ୍ୟା ଦୃଶ୍ୟକୁ ଅନୁଭବ କରିହୁଏ । କହିହୁଏ ନାହିଁ । ଲେଖିହୁଏ ନାହିଁ, ବୁଝେଇ ହେବନାହିଁ ।

ମୋର ଏଇ ଶବ୍ଦ ସଂଭାର ଯଦି ପାଠକମାନଙ୍କୁ କିଂଚିତ ଆନନ୍ଦ ଦିଏ, ସେତିକି ମୋର ଆନନ୍ଦ ।

ମୋର କବିତାଗୁଡ଼ିକରେ ଜଣେ ମୁଗ୍ଧ ପାଠକ, କବି ଓ ବିଦ୍ୱାନ ଶ୍ରୀଯୁକ୍ତ ନୀଳଲୋହିତ ସିଂହଦେଓଙ୍କୁ ଜ'ଣ ବା ଦେଇ ପାରିବି । ବହିଟି ତାଙ୍କ ହାତରେ ଟେକି ଦେଉଛି ।

ସାହିତ୍ୟ ସୃଷ୍ଟିରେ ମୋତେ ଯେଉଁ ମାନେ ସର୍ବଦା ଅନୁପ୍ରେରିତ କରିଛନ୍ତି ସେମାନେ ହେଲେ ସହଧର୍ମିଣୀ ସଂଘମିତ୍ରା, ଶ୍ରଦ୍ଧେୟ ଡ଼ାକ୍ତର ହିମାଂଶୁ କୁମାର ବାରିକ, ଅଧ୍ୟାପକ ନରସିଂହ ଦାସ (ଇଂରାଜୀ) ଅଧ୍ୟାପକ ସୁଧୀର ଚନ୍ଦ୍ର ମହାନ୍ତି (ଓଡ଼ିଆ) ମୋର କେତେ ଜଣ ପ୍ରିୟ ଛାତ୍ର ଶ୍ରୀ ଧ୍ରୁବ ଚରଣ ମହାନ୍ତି (ଆଡ଼ଭୋକେଟ୍), ଶ୍ରୀ ଲକ୍ଷ୍ମୀଧର ସାହୁ (ସତ୍ୟସାଇ ମହିଳା କଲେଜ) ଶ୍ରୀ ଶଚୀନ୍ଦ୍ର ଦାସ (ସଚିବାଳୟ), ଶ୍ରୀ ମୃତ୍ୟୁଞ୍ଜୟ ହୁର(ଦୂର ସଂଚାର ମୁଖ୍ୟକାର୍ଯ୍ୟାଳୟ), ଅଧ୍ୟାପିକା ମାଳତୀ ଦାସ (ଇଂରାଜୀ) ଓ ଅଧ୍ୟାପକ ପ୍ରଭାତ କୁମାର କର (ଓଡ଼ିଆ) ପ୍ରଭୃତିଙ୍କୁ ଆଜି ଶ୍ରଦ୍ଧାର ସହ ସ୍ମରଣ କରୁଛି ।

କବିତା ଗୁଡ଼ଇକ ମଧ୍ୟରୁ କିୟଦଂଶ 'ଅନୁପମ ଭାରତ' (ବାର୍ଷିକ ସଂଖ୍ୟା ୨୦୦୩) 'ଅକ୍ଷାଂଶ' (ବିଶୁବ ସଂଖ୍ୟା ୨୦୦୬) ପୃଷ୍ଠାରେ ପ୍ରକାଶିତ । ପତ୍ରିକାର ସଂପାଦକ ମାନଙ୍କ ନିକଟରେ ମୁଁ କୃତଜ୍ଞ । ଏହାର ଡ଼ିଟିପି କାର୍ଯ୍ୟରେ ଅତ୍ୟନ୍ତ ଉତ୍ସାହର ସହିତ ସହଯୋଗ କରିଛନ୍ତି ଶ୍ରୀମତୀ ଦୀପ୍ତିମୟୀ ପ୍ରକାଶନକୁ ତ୍ୱରାନ୍ୱିତ କରିଛନ୍ତି ଡ଼ି-ନେଟ୍‌ର କର୍ମକର୍ତ୍ତା । ସର୍ବୋପରି ଏହି କାର୍ଯ୍ୟରେ ଆମୂଳଚୂଳ ସହାୟତା ଯୋଗାଇଛନ୍ତି ପବ୍ଲିକେଶନର ଅଧକ୍ଷ ଆଚାର୍ଯ୍ୟ ଭାବାନନ୍ଦ ସମସ୍ତଙ୍କୁ ମୁଁ ଆନ୍ତରିକ ଧନ୍ୟବାଦ ଜ୍ଞାପନ କରୁଛି ।

୧ ଏପ୍ରିଲ୍, ୨୦୦୮ ବିନୀତ

ଲେଖକ

# କବି ଓ ମହାନଦୀ

ମହାନଦୀର ପଟ୍ଟଭୂମିରେ ରଚିତ ଡ଼କ୍ଟର ବନମାଳୀ ବାରିକଙ୍କର କବିତା ସଂକଳନର ପ୍ରତ୍ୟେକଟି କବିତା ଏକ ପ୍ରତୀକାତ୍ମକ ବିଚାରର ପରିଚୟ ଆମକୁ ଦେଇଛି - ଯୋବ୍ରାଘାଟ ମହାନଦୀର (ଆଧୁନିକ ସଭ୍ୟତା), କଣ୍ଟିଲୋ-ମହାନଦୀର (ଆଦି ସଂସ୍କୃତି) ସୋନପୁର -ମହାନଦୀର (ଐଶ୍ୱର୍ଯ୍ୟମାଳିନୀ ପ୍ରାଚୀନ ସଭ୍ୟତା), ହୀରାକୁଦ-ମହାନଦୀର (ଆଧୁନିକ ବିଜ୍ଞାନ କୌଶଳର ବୈଶିଷ୍ଟ୍ୟ), ଚିପିଲିମା - ମହାନଦୀର (ଉଦାର ସୌନ୍ଦର୍ଯ୍ୟ)-ପର୍ଯ୍ୟାଲୋଚନାର ପୃଷ୍ଠଭୂମି ଗୁଡ଼ିକ ବଦଳିଛି ମାତ୍ର ପ୍ରତ୍ୟେକ ସ୍ଥାନର ଏକ ଛାୟା ପର୍ଦ୍ଦାର ବ୍ୟବଧାନ ଭିତରେ ନଦୀକୁ ସାକ୍ଷୀ ରଖି କବି ନିଜ ଆତ୍ମ କାହାଣୀର ଅକପଟ ପ୍ରଦର୍ଶନ ମାଧ୍ୟମରେ ସ୍ୱପରିଚୟ ଖୋଜି ପାଇଛନ୍ତି । ମହାନଦୀ ହିଁ ଏଇ ଜୀବନ ଜୀଜ୍ଞାସାର ହସକାନ୍ଦ, ସୁଖଦୁଃଖ, ପ୍ରାପ୍ତି ଅପ୍ରାପ୍ତିର ଦ୍ୱନ୍ଦ୍ୱରୁ କବିଙ୍କୁ ମୁକ୍ତ କରିଥିବାରୁ କବିତାରେ ମହାନଦୀ ଅସାମାନ୍ୟ ଭୂମିକା ଗ୍ରହଣ କରିଛି । ନଦୀ ତାଙ୍କୁ ଶିକ୍ଷା ଦେଇଛି ଶ୍ରବଣ କୌଶଳର ବର୍ଣ୍ଣାଢ଼୍ୟ ବିଦ୍ୟା । କବି ମଧ୍ୟ ପ୍ରଶାନ୍ତ ଚିତ୍ତରେ, ଅସୀମ ଧୈର୍ଯ୍ୟରେ ମୁକ୍ତ ଅନ୍ତଃକରଣରେ, ନିସ୍ତବ୍ଧ ନୀରବତା ମଧ୍ୟରେ ଶୁଣିଛନ୍ତି ନଦୀର କଥା-ଶରୀର ଆବେଗରେ । ମହାନଦୀର ନୀଳ ଜଳର କଳ କଳ ଧ୍ୱନି, ଉପରେ ନୀଳାଭ ଆକାଶର ନୀଳ ଜ୍ୟୋତ୍ସ୍ନା, ନୀଳ ଦିଗ୍‌ବଳୟରେ ପୃଥିବୀ ଓ ଆକାଶର ସୁଗୋପନ ସଂଗମ ସ୍ଥିତିକୁ ଅନୁଭବ କରି ନିଜର ଯେତେକ ଦାମ୍ଭିକତା, ଭୀରୁତା, ଅହଙ୍କାରର ଛଦ୍ମରୂପକୁ ବଳିଦାନ ଦେଇ ଉତ୍ତରଣ ଦିଗକୁ ଅଗ୍ରସର ହୋଇଛନ୍ତି । ଏହାହିଁ ଜୀବନ-ଜିଜ୍ଞାସା ଯାହାର ଅନ୍ତ ଘଟିଛି ବ୍ରହ୍ମ ଜିଜ୍ଞାସାରେ । ଏହି ଦୁଇ ଆବଶ୍ୟକତାକୁ ସଂଯୁକ୍ତ କରୁଥିବା କୈଶୋର ତାରୁଣ୍ୟ, ଅପରାହ୍ନ ଆଦିର ସ୍ଥିତି ଓ ସ୍ମୃତି ସୁସ୍ପଷ୍ଟ । ଏସବୁର ପ୍ରୟୋଜନ ରହିଛି । ସବୁ ଅବସ୍ଥାର ପ୍ରୟୋଜନୀୟତାକୁ ଜୀବନରେ ଜରୁରୀ ବୋଲି କବି ଗ୍ରହଣ କରିଛନ୍ତି । ଏକ ସର୍ବୋତ୍ତମ ଅଭିଜ୍ଞତା ପ୍ରାପ୍ତି ପଥରେ ସବୁ ଅବସ୍ଥା ମଧ୍ୟ ଦେଇ ଯିବା ନିତାନ୍ତ ପ୍ରୟୋଜନ । ତା' ନହୋଇଥିଲେ ତାଙ୍କ ଅନ୍ତର ଗଭୀର ଆନନ୍ଦର କୁଆର ସଂବଧରେ ଆମେ କେବେ ମଧ୍ୟ ପରିଚିତ ହୋଇପାରି ନଥାନ୍ତୁ । ମହାନଦୀର ନୀରବ ଭାଷାରୁ ତା ଉପରେ ବର୍ଷା ଓ ଘନଘଟା ବାଦଲ ଆଦିରୁ କବି ସୃଷ୍ଟିର ପୂର୍ଣ୍ଣତା, ସଂଗତି ଓ ଐକ୍ୟବୋଧକୁ ଅନୁଭବ କରିଛନ୍ତି । ସ୍ମୃତି ଏକ ମହାଜାଗତିକ ପ୍ରେରଣାରେ

ପରିସମାପ୍ତି ଘଟିଛି । ମହାନଦୀକୁ ଏପରି ବୁଝିପାରିଥିବା କବି ସତରେ ଓଡ଼ିଆ କାବ୍ୟ ସାହିତ୍ୟରେ ବିରଳ । ହଁ, ମାନସିଂ, ଚିନ୍ତାମଣି ବେହେରା ଆଦି ସୁନାମଧନ୍ୟ କବିମାନଙ୍କର ସ୍ମୃତି ଚାରଣ କରାଯାଇଛି । ସମସ୍ତଙ୍କ ମୁଖ ହଜି ଯାଉଛି ନୀଳ ଜଳ ଢେଉରେ । ତଥାପି କିଛି ହଜିଯାଏ ନାହିଁ, କିଛି ମଧ୍ୟ ଧ୍ୱଂସ ପାଏନାହିଁ ବରଂ ପ୍ରତ୍ୟେକ କ୍ଷଣ ଅମରତ୍ୱ ଲାଭକରେ ଅଭିଜ୍ଞତାରେ । ଏଥିପାଇଁ କବିଙ୍କର ଆତ୍ମ ପ୍ରସ୍ତୁତି ଓ ଐକ୍ୟବୋଧ-ଭାବର ଗୂଢ଼ ଅନୁଭୂତି ନିହିତ । ସଂଗ୍ରାମ ଓ ଆହ୍ୱାନ ମଧ୍ୟରୁ ଜାଗି ଉଠେ ଏକ ମଗ୍ନ ଚେତନାରେ ବୁଡ଼ିଯାଇଛନ୍ତି କବି । ଏଇ ନୂତନ ଜାଗୃତି ମୋତେ ଅପାର ଆନନ୍ଦ ପ୍ରଦାନ କରିଛି ଓ ଅନ୍ୟମାନେ ମଧ୍ୟ ଏହି ଆନନ୍ଦର ସମଭାଗୀ ହେବେ ନିଶ୍ଚୟ । କବିତାର ପ୍ରଥମ ପାଠରେ ସୃଷ୍ଟିହୋଇଥିବା ଜୀବନ ଯନ୍ତ୍ରଣାର ସ୍ୱର ଗତାନୁଗତିକ ଜୀବନର ଅଭାବବୋଧ ନଦୀର ଅନ୍ତଃସ୍ୱରରେ ବିଲୀନ ହୋଇଯାଇଛି ।

କବି ମାନସିଂହ, ଚିନ୍ତାମଣି ବେହେରା ଆଦିଙ୍କର ମୁଖ ଓ କଥା ଗୁଡ଼ିକ ପରସ୍ପର ସହିତ ସହସ୍ର ବନ୍ଧନରେ ଆବଦ୍ଧ, ପ୍ରତ୍ୟେକ ହିଁ କ୍ଷଣସ୍ଥାୟୀ ବ୍ୟାକୁଳ ବେଦନାର ଉଦାହରଣ, କିନ୍ତୁ ପ୍ରତ୍ୟେକ ମୁଖ ମଧ୍ୟରେ ରହିଛି ସ୍ୱଳ୍ପ ସମୟ-ପର୍ଦାର ବ୍ୟବଧାନ । ବାହାରି ମୃତ୍ୟୁ ନାହିଁ, ସେମାନଙ୍କର ରୂପ ପରିବର୍ତ୍ତନ ହୁଏ । ପ୍ରତି ମୁହୂର୍ତ୍ତରେ ନୂତନ ଜୀବନ ଲାଭକରେ - ଏଇ ଯେପରି କବିଙ୍କର କବିତା ଗୁଡ଼ିକରେ ।

ଜଣେ କହିବାର ଶୁଣିଥିଲି - ଗିରି ଗୋବର୍ଦ୍ଧନ, ମାତାଗଙ୍ଗା ଭାରତରେ ଥିବା ପର୍ଯ୍ୟନ୍ତ ଭାରତର ବିଲୟ ନାହିଁ । ଠିକ୍ ସେମିତି ଚିରସ୍ରୋତା ମହାନଦୀ ଓ ଅସଂଖ୍ୟ ପର୍ବତ ଭରା ଓଡ଼ିଶାର ବର୍ଣ୍ଣାଢ଼୍ୟ ସଂସ୍କୃତିର କ୍ଷୟ ନାହିଁ । ଓଡ଼ିଶା ଏକ ଭୌଗଳିକ ସ୍ଥିତି ମାତ୍ର ନୁହେଁ, ଏକ ମହାନ୍ ଆଧ୍ୟାତ୍ମିକ ବାସ୍ତବତାର ମୂଳରୂପ । କବିଙ୍କ ଭାଷାରେ - ସର୍ବୋଚ୍ଚ ପର୍ଯ୍ୟାୟରେ ନୀଳମାଧବ ଯେଉଁ ସତ୍ୟ (ଜଗନ୍ନାଥ ରୂପରେ), ସେହି ସତ୍ୟର ରୂପାୟନ ନିମିତ୍ତ ଘଣ୍ଟ ବିମୁଗ୍ଧା ଘଣ୍ଟେଶ୍ୱରୀ ଓ ଲଙ୍କେଶ୍ୱରୀ - ମହାସରସ୍ୱତୀ, ମହାଲକ୍ଷ୍ମୀ ଓ ମହାକାଳୀଙ୍କର ମହାଚେତନାର ପରିଭାଷା ମାତ୍ର । ଏହି ମହାନ୍ ଚେତନାର ପରିପ୍ରକାଶ ନିମିତ୍ତ ମହାନଦୀର ଭୂମିକା ଅସାମାନ୍ୟ । କବିଙ୍କର କାବ୍ୟିକ ଦକ୍ଷତା ଓ କୁଶଳତା ଏକ ମହାନ୍ ସଂସ୍କୃତି ସହ ଉତ୍କଳବାସୀଙ୍କର ପରିଚୟ କରାଇପାରୁ ଥିବାରୁ ତାଙ୍କୁ ଅନ୍ତରର ଗଭୀର କୃତଜ୍ଞତା ।

-ଅଧ୍ୟାପିକା ମାଳତୀ ଦାସ-
ଇଂରାଜୀ ବିଭାଗ
ବାଙ୍କୀ ସ୍ୱୟଂଶାସିତ ମହାବିଦ୍ୟାଳୟ, ବାଙ୍କୀ
୧ ଏପ୍ରିଲ୍, ୨୦୦୮

## କଣ୍ଟିଲୋରେ ସକାଳ : ମହାନଦୀ

(୧)

ଏକଦା ଏ ମହାନଦୀ ଥିଲା ମୋର,
ପ୍ରୀତି ସ୍ନିଗ୍ଧ ଅନୁରାଗୀ
ଅନେକ ସଂଧାର ।

ଆଷାଢ଼ର ଆକାଶରେ ମେଘଥିଲା, ବର୍ଷା ଥିଲା,
ଆଉ ଜଣେ ମେଘଦୂତ କାବ୍ୟର ନାୟକ
ଗାଇଥିଲା ଗୀତ ପ୍ରକାସର ।।

କଟକରୁ କେତେଦୂର କେଉଁ ପ୍ରିୟତମା ଘର,
ବିଶ୍ୱାସରେ ନିଶ୍ୱାସରେ
ଥିଲା ଖାଲି ଆକର୍ଷଣ
ଏବଂ ଆକର୍ଷଣ ।

ଯୋବ୍ରାର ପଥର ବଂଧ, ବର୍ଷା ଆଉ ମହାନଦୀ,
ବିଭୋର ସ୍ୱପ୍ନରେ ସେ କେଉଁ କବିର ଭାଗ୍ୟ,
ଆକୁଳିତ ବ୍ୟାକୁଳିତ,
ଯେପରିକି ଶ୍ୟାମଳ ଅରଣ୍ୟ ।।

(୨)

ତାପରେ ଏ ମହାନଦୀ ମିଛ ହେଲା,
ମିଛ ହେଲା ରକ୍ତର ପ୍ରତ୍ୟୟ ।
ମୁଁ କାକୁସ୍ଥ ଯାଯାବର, ବୁଲି ବୁଲି
ବହୁ ବେଶ, ବହୁ ପଥ, କାନନ କାନ୍ତାର ।।

କାହା ସଂଗେ ହେଲା ଭେଟ,
କିଏ ପୁଣି ବାଟଭାଙ୍ଗି, ହାଟଭାଙ୍ଗି
ହଜିଗଲା, ମଣିଷଙ୍କ ଭିଡ଼େ ।

ଡ଼ାଳପତ୍ର କୁଡ଼ିଆରେ, ରଂଗହୀନ ସ୍ୱପ୍ନହୀନ ସମୟକୁ
ଆଲିଙ୍ଗନ କରି କିଏ ପୁଣି,
ଗଢ଼ିଲା ସଂସାର ।।

ବହୁଦିନ ପରେ ପୁଣି ମହାନଦୀ ସଂଗେ ଆଜି
ହେଲା ଭେଟ, ମେଘକ୍ଳାନ୍ତ
କଣ୍ଟିଲୋର ଉଦାସ ସକାଳ ।

ସେପାଖେ ପାହାଡ଼ମାଳା ଏପାଖେ ମହିମ୍ନ ଭୂମି,
ନୀଳକନ୍ଦର ନିବାସୀ
ନୀଳ ମାଧବର ।।

ଉପରେ ଅନନ୍ତ ଲୀଳା ସୀମାହୀନ ନୀଳ ଆକାଶର,
ଦୂର ଚକ୍ରବାଳ ଛୁଏଁ -
ମହାନଦୀ ବିପୁଳ ବିଭୂତି ।

ହଜିଯାଏ ମଣିଷର ସକଳ ପାର୍ଥିବ ପଣ,
ସକଳ କୌଶଳ,
ବିଦ୍ୟାବୁଦ୍ଧି ଜ୍ଞାନ ଅହଂକାର ।।

ମୁଁ ଅଥର୍ବ ଆଜି ଦେଖେ -
ମହାନଦୀ ନୂଆରୂପ, ନୂଆ ପରିଚୟ ।

ଅସୀମ ସମୟ କୋଳେ,
ବିଶ୍ୱର ବିଚିତ୍ର ସଂଜ୍ଞା,
ମହନୀୟ ଏବଂ ଲୋଭନୀୟ ।।

(୩)

ତୁମେ ଆଦି ଜଗନ୍ନାଥ । ଆଦିମ ଜିଜ୍ଞାସା ତୁମେ,
ଆଦିମ ମଣିଷଙ୍କର, ପ୍ରିୟତମ
ଅବୁଝା ଠାକୁର ।

ଅରଣ୍ୟର ମାୟା ଛାଡ଼ି, ଛାଡ଼ି ନିଜ ଭାଇବନ୍ଧୁ ପ୍ରିୟଜନ,
ପହଞ୍ଚିଲ ନୀଳଗିରି ଚୂଳେ,
ନୀଳସିନ୍ଧୁ ପ୍ରେମରେ ବିଭୋର ।।

ହେ ଚତୁର ବିଦ୍ୟାପତି ! ସେଦିନ ଏ ମହାନଦୀ
କୂଳ ଛୁଇଁ ଜଳ ଛୁଇଁ, କହିଥିଲ ଯାହା,
ଆଜି ବୋଧେ କିଛି ମନେ ନାହିଁ ।

ରାଜାର ହୁକୁମ ଅବା ଠାକୁରର ଆଜ୍ଞାମାନି ଅବା -
ଭୁଲିଗଲ ଲଳିତ ଲବଙ୍ଗଲତା ଲଳିତାର,
ଅନ୍ତରର କୋହ କଇଁ କଇଁ ।।

(୪)

ସାରାରାତି କାଲି ବର୍ଷା, ବର୍ଷା ଓ ବିଜୁଳି,
ଓଦାମାଟି ମହକରେ ମହକିଲା,
କଣ୍ଢିଲୋର ନିଝୁମ ଆକାଶ ।

ସକାଳକୁ ମହାନଦୀ - ଗୋଳିପାଣି, ଫେଣ ଓ ଭଉଁରୀ
ମନେହେଲା କେଉଁ ଏକ
ଅରବ୍ୟ ରଜନୀ - କୁହୁକର ଦେଶ ।।

ପୂଣ୍ୟତୋୟା ମହାନଦୀ, ଉତ୍କଳର ଚିତ୍ରୋତ୍ପଳା,
ସରିତି କୁଳଈଶ୍ୱରୀ, ମନ୍ଦାକିନୀ
ପତିତ ପାବନୀ, ଉଚ୍ଛଳ ଉତ୍କୁଳ ।
ଆଦରିବା ପାଇଁ ମୋତେ ଏବଂ ମୋର
କ୍ଳାନ୍ତଶ୍ରାନ୍ତ ଜୀବନକୁ ଦେବାପାଇଁ ଐଶ୍ୱରିକ ଆଲିଙ୍ଗନ,
ସେଦିନ ମୁଁ ଅବଗାହି ମହାନଦୀ ବିପୁଳ ସ୍ନେହରେ
କୋଳ ତାର ଏକାନ୍ତ ଆକୁଳ ।
ହଜାଇଲି ସବୁ ଆଡ଼ମ୍ବର,
ହଜାଇଲି ସବୁ ଆସ୍ଫାଳନ ।

ପାଇଗଲି ଅବା ମୋର ନିଜ ପରିଚୟ,
ନିସ୍ୱଃ ଏକ ଧୂଳିକଣା,
ଦୀନହୀନ ନିଭୃତ ନିର୍ଦ୍ଧଣ ।।

****

## ମହାନଦୀ-ଜହ୍ନରାତି : ସୋନପୁର

(୧)

ମହାନଦୀ ନୀଳଜଳେ
ଭାସିଯାଏ ସୋନପୁରୀ ନାଆ ।
ଆକାଶର ନୀଳଛାତି
ତଳେ କେଉଁ ସ୍ୱପ୍ନିଳ ଦୁନିଆଁ ।।

(୨)

ମାନସିଂହ ! ତମେ କଣ ଏହିପରି
ଦିନେ କେଉଁ ଜ୍ୟୋତ୍ସ୍ନାୟିତ ଅମୃତ ତିଥିରେ ।
ଦେଖିଥିଲ ମହାନଦୀ - ଦେଖିଥିଲ ତାର ଶିଳାଶଯ୍ୟା,
ଅଦୂର ପର୍ବତମାଳା, ଅପୂର୍ବ ସଂଭାର ।।

ଦେଖିଥିଲ ନୀଳ ଜଳେ - ରାଜ ଉଆସର ଛବି,
ଦୁର୍ଗର ପ୍ରାଚୀର, ଏବଂ ମନ୍ଦିରର ଚୂଡ଼ା ।

ଖୋଜିଥିଲ ଉତ୍କଳର ଗରିମାମୟ ଅତୀତ ବିଭବ,
ଏବଂ ଦୀର୍ଘ ପରିଚୟ ତୃପ୍ତ ବୀରତ୍ୱର ।।

ମନେ ପଡ଼େ ମାନସିଂହ ! ସେଦିନ ତରୁଣ କବି,
ତମ ସହ ଆଳାପରେ -
ହଜିଥିଲା ମଧୁର ମଧ୍ୟାହ୍ନ ।

ମହାକବି କାଳିଦାସ, ଶେଲି, କିଟସ୍, ବାଇରନ୍-
ଡ଼େଇଁ ଡ଼େଇଁ ଲମ୍ୱିଥିଲା ଆମ ଗପ ସାରଳାରୁ ସତ୍ୟବାଦୀ
ଏବଂ ଆମ ଆଗାମୀ ଜୀବନ ।।

ସେହିଦିନଠାରୁ ତମେ ଆଚ୍ଛନ୍ନ କରିଛ ମୋତେ,
ଆଚ୍ଛନ୍ନ କରିଛି ମୋର ଦେହ ମନ ପ୍ରାଣ ।

ଆଜି ପୁଣି ଜ୍ୟୋସ୍ନାୟିତ ରାତି,
ଆଜି ପୁଣି ମହାନଦୀ, ଆଜି ପୁଣି ନୀଳ ଜଳ
ଭାସିଯାଏ ଆମର ସପନ ।।

(୩)

ଦେବୀ ଲଙ୍କେଶ୍ୱରୀ ! ସୁବର୍ଣ୍ଣପୁରୀ ଲଙ୍କାର ତମେ ଅଧିଶ୍ୱରୀ-
ଦର୍ପିତ ରାବଣ ତମ ପାଦତଳେ
ଦେଉଥିଲା ଲକ୍ଷେ ପୁଷ୍ପାଞ୍ଜଳି ।

ରାବଣର ରାଜପଣ ! କବିପଣ ! ଜ୍ଞାନ ଓ ସାଧନା
ଏବଂ ତାର ତ୍ରିପୁର ବିଜୟୀ ବାନା
ସବୁ ତୁଚ୍ଛ କରି ।।

ତମେ କଣ ଆସିଥିଲ ଗଢ଼ିବାକୁ -
ଅନ୍ୟ ଏକ ଲଙ୍କାପୁରୀ,
ଭାରତ ଭୂମିରେ, ଶ୍ରୀରାମ ଆଜ୍ଞାରେ,
ଅବା ବିଭୀଷଣ କୃତଜ୍ଞତା ପଣେ ।

ଇତିହାସ ମନେନାହିଁ, ମନେନାହିଁ ପୁରାଣର କଥା,
କେତେଯୁଗ, କେତେ ସମ୍ବତ୍ସର,
ହେଲା ଗତ ସବୁ ଲାଗେ ଖାଲି ସ୍ୱପ୍ନପରି ।।

ଅବା ତମ ସ୍ୱପ୍ନାଦେଶେ ଗଢ଼ାହେଲା
ନୂତନ ନଗରୀ ଧନଧାନ୍ୟ ବିମଣ୍ଡିତା
ଏ ସୁବର୍ଣ୍ଣପୁରୀ ।

ତମେ ହେଲ ପ୍ରତିଷ୍ଠିତା ଏଇ ମହାନଦୀ କୂଳେ
ଆଗୋ ଦେବୀ ଲଙ୍କେଶ୍ୱରୀ !
ଲୋହିତ କାପାଳୀ ।।

ମୁଁ ତବ ଅଧମ ପୁତ୍ର, ଜାଣେ ନାହିଁ
ପୂଜାର୍ଚ୍ଚନା, ନିରାଜନା,
ଜାଣେନାହିଁ ମନ୍ତ୍ରପୂତ ଆମନ୍ତ୍ରଣ ବିଧି ।
ଅସୀମ ଶ୍ରଦ୍ଧାରେ ଖାଲି ଦେଇପାରେ
କୋଟିପ୍ରଣିପାତ
ପଥର ମୁଣ୍ଡିଆ ପରେ ପ୍ରକାଶିତ ମାୟା
ମାୟାମୟୀ, ଜାଗ୍ରତ କରାଳୀ
ଆଗୋ ମହାକାଳୀ ।।

(୪)

ଏଥର ଫେରିବାବେଳ, ମହାନଦୀ ନୀଳଜଳ,
ନୀଳ ଜ୍ୟୋତ୍ସ୍ନା, ନୀଳ ଦିଗ୍‌ବଳୟ ।
ସଂସାରର ସୁଖଦୁଃଖ ହରାଇଛି ସବୁ ସୀମାତାର -
ଉଦ୍‌ବେଳିତ ଆନନ୍ଦରେ ସବୁ ପ୍ରୀତିମୟ ।।
ଦେହ ଆଜି ଦେହ ହୀନ, ଇଚ୍ଛା ଆଜି ଇଚ୍ଛାହୀନ,
ସ୍ୱପ୍ନ ଆଜି ସ୍ୱପ୍ନହୀନ, କାହିଁଗଲା ମୋ କାମିତା,
ମୋ ଦମ୍ଭିତା, ମୋ ଭୀରୁତା
କାହିଁଗଲା ଯେତେସବୁ ମୋ ମୋ ପଣ ।

କାହାର ପ୍ରେମରେ ଆଜି
ବିହ୍ୱଳ ମୋ ସକଳ ଇନ୍ଦ୍ରିୟ
କେଉଁ ନଦୀ କେଉଁ ଦେବୀ ?
ଈଶ୍ୱର ବା ଯୋଗେଶ୍ୱରୀ ?
କେଉଁ ଭୂମା ବା ଅଭୂମା ? ଦିବ୍ୟ ବା ଅଦିବ୍ୟ ?
ମଣିମୟ କେଉଁ ଆକର୍ଷଣ ।।

ନାଉରୀ ଛୁଇଁଲା ଘାଟ,
ଶେଷ ହେଲା ଆମ ବାଟ,
ନିକଟରେ ପ୍ରସ୍ତର ପାବଚ୍ଛଶ୍ରେଣୀ,
ମରିକାଶୀ ରାଜନନ୍ଦିନୀର ।
ଅଦୂରରେ ରାଜାର ଉଆସ ।
ସଂସ୍କୃତିର ପୁଣ୍ୟପୀଠ ।
ସାହିତ୍ୟର ତୀର୍ଥକ୍ଷେତ୍ର,
ଏକଦା ଗର୍ବିତ ଶିର ।
ଆଧୁନିକ ଜିଜ୍ଞାସାର ପୁଣ୍ୟଭୂମି
ଅପାର ବିଶ୍ୱାସ ।।
ପ୍ରଣାମ ସୁବର୍ଣ୍ଣପୁର ।
ଧନ୍ୟ ପୁତ୍ର କନ୍ୟା ତୋର ।
ଧନ୍ୟ ତୋର ବିଚିତ୍ର ଭୂଗୋଳ
ଏବଂ ଧନ୍ୟ ତୋର ଦୀପ୍ତ ଇତିହାସ ।
ଆଜିର ଏ ପୁଣ୍ୟ ତିଥି ।
ମୋ ସ୍ମୃତିର ଚିର ସାଥି ।

ଏଇ ପ୍ରିୟ ମହାନଦୀ । ସୋନପୁର,
ଏଇ ପ୍ରିୟ ଜ୍ୟୋସ୍ନାୟିତ
ମଧୁର ଆକାଶ ।।

(୫)

ହେ ମୋର ପୂଜ୍ୟଗୁରୁ !
ହେ ମୋର ଦିଗନ୍ତର ଡ଼ାକ,
ମନେ ଅଛି ବି.ଏ.କ୍ଲାସ ।
କେତେ କ୍ଳାନ୍ତ ଅପରାହ୍ନ,
ମହାନଦୀ, ମାନସିଂହ କବିତାର
ମୁଗ୍ଧ ସଂଭାଷଣ ।

ଯୌବନର ଆଦ୍ୟପାଦ ।
ନୂଆ ନୂଆ କବିତାର ଭାଷା ।
ଏବଂ ନୀଳ ଆଖି ନୀଳିମାରେ
ହଜିବାର ନିଶା ।

ସେତେବେଳେ ଆମ ଦୃଷ୍ଟି, ଆମ ସୃଷ୍ଟି
ଦିଗ୍‌ବଳୟ ରେଖା ଉଦ୍‌ଭାସିତ କରି

ଗୋଟିଏ ନକ୍ଷତ୍ର ତମେ କରୁଥିଲ
ଜ୍ୟୋତି ବିକିରଣ ।।

ପରେ ଶାନ୍ତି କାନନରୁ ଦୀର୍ଘପଥ

ଶାନ୍ତି ନିକେତନ-
ମହନଦୀ ଥିଲା ମୋର
ଦୀର୍ଘ କାଳ ଅବୁଝା ଗଣିତ ।

କାହିଁ ସେଇ ମହାନଦୀ ?

ମାନସିଂହ ତୂଳୀରେ ବିଚିତ୍ର,
ଏବଂ ଚିନ୍ତାମଣି ବେହେରାର
ଶବ୍ଦମୟ ସୁଷମାରେ
ନିନ୍ଦିତ କେତେ ବନ୍ଦିତ ।।

ଆଜି ମୋର ମନେହେଲା ମୁଁ ପାଇଛି
ମୋ ଖୋଜିଲା ଧନ,
ମାନସିଂହ ଚିନ୍ତାମଣି ଦୁହିଁଙ୍କୁ ଏଠାରେ ।

ମହାନଦୀ ନୀଳବେଣୀ,
ମହାନଦୀ ଜହ୍ନରାତି ।
ବଂଧୁମୟ, ବହିତ୍ର ସଂଭାରେ ।।

****

# ହୀରାକୁଦରେ ଅପରାହ୍ନ : ମହାନଦୀ

(୧)

ମହାନଦୀ ! ଏପାରେ ଶୂନ୍ୟଗର୍ଭା,
ପ୍ରସ୍ତରିତ-ବନ୍ଧୁର-କର୍କର୍ଶ,
ନିଦାରୁଣ ଭାଗ୍ୟ ଭଳି, ଦୟାହୀନ, ମାୟାହୀନ
ଏ କାନ୍ତ ନିଷ୍ଠୁର ।

ମହାନଦୀ, ସେ ପାଖରେ ପୂର୍ଣ୍ଣଗର୍ଭା,
ସ୍ୱପ୍ନମୟ ଜଳରାଶି,
ଅଶେଷ ସଂକଳ୍ପ ଭଳି, ମଧୁର ସଂଳାପଭଳି
ବିମୁଗ୍ଧ ସୁନ୍ଦର ।।

ସେଦିନ ବି ଆକାଶରେ ସୂର୍ଯ୍ୟ ଥିଲା,

ଝୁଲନ୍ତ ସ୍ୱର୍ଣ୍ଣାଭ ସ୍ୱପ୍ନ,

ଅନୁରାଗ ଆନନ୍ଦରେ ଜଳରାଶି ଛୁଇଁଥିଲା

ଆକାଶର ନୀଳଛାତି,

ନୀଳ ଦେହ ଦୂର ପାହାଡ଼ର ।

ଅଦୃଶ୍ୟର ଖେଳ ଭଳି, ପ୍ରେମ ପ୍ରତାରଣା ଭଳି,

ସବୁ ସୁନ୍ଦର ସ୍ୱପ୍ନର

ଅନ୍ତରାଳେ ଥିଲା କେତେ

ହତାଶାର ଦୀର୍ଘ ରୁକ୍ଷ ସ୍ୱର ।।

ମହାକାଳ ଏହିପରି, ସଜାଇଛି ଜୀବନକୁ,

ଏକପାଖେ ସୁଖର ବିହୁଡ଼ି -

ଆରପାଖେ ଅନେଶତ ଦୁଃଖର ମରୁଡ଼ି ।

କିନ୍ତୁ ମୂଢ଼ ମଣିଷର

ଆସ୍ଫାଳନ ଶେଷନାହିଁ,

ଶେଷ ନାହିଁ କାମନାର,

ଶେଷନାହିଁ ଦିଗନ୍ତୁଆଁ କୁହୁଡ଼ିକୁ ହୁଡ଼ି ।।

ସଂଜ ନଇଁ ନଇଁ ଆସେ

ବହୁଦୂର ଯାତ୍ରାର ଡ଼ାକରା ।

ମହାନଦୀ-ହୀରାକୁଦ

ବିଦାୟ ବିଦାୟ

ଅନୁକୂଳ ସମୟର ଅନୁରୋଧ ରକ୍ଷା କରି,

ପୁନଶ୍ଚ ଆସିବି କେବେ -

ଛୁଇଁବାକୁ ରହସ୍ୟର  ନିଭୃତ ବଳୟ ।।

(୨)

ହୀରାକୁଦ, ଆଧୁନିକ ଓଡ଼ିଶାର

ନୂଆ ପରିଚୟ, ନୂତନ କୋଣାର୍କ,

ଆଧୁନିକ ଜ୍ଞାନ ଆଉ ବିଜ୍ଞାନର,

ନୂଆ ଦିଗ୍‌ବଳୟ ।

ଅବାକ୍ ମଣିଷ ଏଠି

ବିଜୁଳିର ତନ୍ତ୍ର ମନ୍ତ୍ର ପ୍ରଜ୍ଞାୟିତ -

ସଭ୍ୟତାର ବିପୁଳ ସଂଭାର ।।

କୃଷକର ଭାଗ୍ୟହସେ,
ଯାନ୍ତ୍ରିକର ଭାଗ୍ୟ ହସେ,
ବଣିକର ଭାଗ୍ୟ ହସେ, ଭାଗ୍ୟ ହସେ
ସରକାରୀ ଅମଲାତନ୍ତ୍ରୀର ।
ଓଡ଼ିଶାର ଭାଗ୍ୟହସେ, ଭାରତର ଭାଗ୍ୟ ହସେ
ହସେ ଆମ ରାଜନୀତି ଅର୍ଥନୀତି
ଭାଗ୍ୟ ହସେ କେତେ ଜାତି, ଉପଜାତି,
ଅକିଞ୍ଚନ ଅଧମ ଜରେ ।

(୩)

ଅସହାୟ ଜନତାର ଭାଗ୍ୟ କିନ୍ତୁ କାନ୍ଦୁଥାଏ,
କାନ୍ଦୁଥାଏ ଜଳମଗ୍ନ କେତେଗ୍ରାମ,
ଗହନ କାନ୍ତାର ।

ଜଳମଗ୍ନ ମନ୍ଦିର ଓ ଦେବୀପୀଠ ଏବଂ
କେତେ ଭାଗବତ ଘର ଆଉ
ଭୀମଭୋଇ ଭଜନ ମନ୍ଦିର ।।

କୋଅଟ କଚେରୀ ହାକିମ ମନ୍ତିରୀ

ନାଲିଫିତା ତଳେ କାନ୍ଦୁଥାଏ

କେତେ ଆଶା ଆଉ ଆନନ୍ଦର

ଉଜୁଡ଼ା ନଅର ।

ହୀରାକୁଦ କାହାପାଇଁ ହାହାକାର,

ବାସ୍ତୁହରା, ବୃତ୍ତିହରା

ସ୍ୱପ୍ନହରା ମଣିଷର ଦୁଃଖର ଦୀର୍ଘଶ୍ୱାସ,

ଦୀର୍ଘ ଇସ୍ତାହାର ।।

(୪)

କୋଣାର୍କର ମାନେ ହିଁ ତ

ସଭ୍ୟତାର ଦୃପ୍ତ ଅଭିମାନ ।

ଅନ୍ତରାଳେ ଜଳୁଥାଏ

ଜୀବନର ତିକ୍ତ ଅପମାନ ।।

****

## ମହାନଦୀ-ଚିପିଲିମା : ଦେବୀ ଘଣ୍ଟେଶ୍ୱରୀ

(୧)

କାହିଁ ଦୂର ମହାନଦୀ, କାହିଁ ଦୂର ଘଣ୍ଟେଶ୍ୱରୀ,
ବିଶ୍ୱାସର ଅଭୟ ମୁଦ୍ରାରେ
ସେଦିନ ଡ଼ାକିଲ ମୋତେ
ତ୍ରିକାଳ ନୟନୀମାତା,
ଗଭୀର ଜଳ ବନ୍ଦିନୀ,
ମାହେଶ୍ୱରୀ ପର୍ବତ ନନ୍ଦିନୀ ।
ଘଣ୍ଟି ଘଣ୍ଟା ପ୍ରିୟା ମାତା, ସର୍ବ ଶୁଭପ୍ରଦାୟିନୀ,
ଘଣ୍ଟିକା ପୀଠ ଶୋଭିନୀ, ସିନ୍ଦୂର ସୁଖ ମୋହିନୀ,
ସଂବଲ ଭୂମି ଭବାନୀ, ଚିପିଲିମା ସୀମାନ୍ତ ସଂଗିନୀ ।।

ଘଣ୍ଟାରେ ମଣ୍ଡିତ ପୀଠ, ବୃକ୍ଷ ଶିଖ, ମନ୍ଦିର ଦୁଆର,
ଭକ୍ତ ମନବାଞ୍ଛା ପୂର୍ଣ୍ଣକର - ମାତା ଘଣ୍ଟେଶ୍ୱରୀ,
ଆଦି ମାତା, ଜଗତ କରତା ।
ଜନଶ୍ରୁତି କିଂବଦନ୍ତୀ ଗାଏ ତମ ଗାଥା,
ସଂକଟ ତାରିଣୀ ମାତା, ଦୁଃଖୀ ଦୁଃଖ ବିନାଶିନୀ,
ମହାନଦୀ ଶଯ୍ୟା ସଂଭବିତା ।।
କେଉଁ ହର ବେହେରାର ସ୍ୱପ୍ନ ସତ୍ତା
ଆଜି ତମେ ଦିଗନ୍ତ ବିସ୍ତାରୀ ମାୟା
ଲକ୍ଷ ଲକ୍ଷ ଭକ୍ତଙ୍କ ଭରସା ।
ମୁଁ ଅଧିମ ଅର୍ଘ୍ୟିତ ଜନ ମୋତ କ୍ଷମାକର ମାତଃ
ତୋ ଅପୂର୍ବ ଲୀଳା ବର୍ଣ୍ଣିବାକୁ
ପାଏ ନାହିଁ ଭାଷା ।।

(୨)

ଆଜି ଛୁଆବୁଢ଼ୀ ଘରେ   ସାରାଦିନ ସାରା ରାତି,

ଢ଼େଉମାରେ ଗପର ଲହଡ଼ି

କେତେଦୂରେ ସକାଳ କୁହୁଡ଼ି ।

ସେଦିନର ସ୍କୁଲ ପଢ଼ା ବେତନଟୀ ହାଇସ୍କୁଲ,

ଗଂଧାଳି ଓ ଦୁର୍ଗାପୁର ଆଗୁଆଡ଼ ଅସ୍ତପୁରା,

ଲମ୍ବିଯାଏ କଥା ଆଉ ଲଥା,

ଲମ୍ବିଯାଏ ଜୀବନର ଗୁଡ଼ି ।।

ମନେପଡ଼େ ପିଲାଦିନ, ଫଗୁଣର ଶାଳବଣ,

ମହ ମହ ମହୁଲ ଫୁଲର ବାସ୍ନା,

ମକରର ନାଚ ଗୀତ କୁକୁଡ଼ା ଲଢ଼େଇ ।

ମାଦଳ ଧୁମ୍‌ସା ମାଡ଼, ଭୋଦୁଅ କରମା ନାଟ

କନ୍ଧସାଇ କୋହ୍ଲସାଇ ସାରା ରାତି ନାଚ ଓ ହାଣ୍ଡିଆ

ଦେଇଥିଲା ଜୀବନରେ ମହକ ଖେଳାଇ ।।

ଖୁଡ଼ୀଙ୍କର ଅତୁଟ ବିଶ୍ୱାସ, ବିଦ୍ୟାଧର ଭାଇଙ୍କ ଭରସା,

ଏବଂ ରାଧାମୋହନଙ୍କ ସ୍ନେହସିକ୍ତ ଭାଷା,

ଗଢ଼ିଚାଲେ ଦିନ ପରେ ଦିନ ।

ସୁଦୂର ଅତୀତ ଆଉ ବର୍ତ୍ତମାନ ମିଶିଯାଏ

ଏଠି ବୁର୍ଲା ଗଉଡ଼ପାଲିରେ

ସତେକି ନିମିତ୍ତ ହେଲା

ଦେବୀ ଘଣ୍ଟେଶ୍ୱରୀ ଭଜନ ପୂଜନ ।।

(୩)

ଚାରିଶତ ବର୍ଷ ହେଲା ମହାନଦୀ କୂଳେ ଦେବୀ ପାତିଛ ଆସ୍ଥାନ,

କିଏ କହେ ଗ୍ରାମଦେବୀ ନିଜର ମହିମାବଳେ ହୋଇଛ ମହାନ୍ ।

ଜୀବନର ଅପରାହ୍ନେ କିଛି ନାହିଁ ମାଗୁଣି ମୋହର,

ଆଗୋଦେବୀ ! ଦୟାକର ମିଳୁଥାଉ ଦର୍ଶନ ତମର ।

ଜଳବନ୍ଦୀ ଅରଣ୍ୟ ମଣ୍ଡିତା ମାୟା ତମ ଏକାନ୍ତ ବିଚିତ୍ର,

ବିମର୍ଷ ମଣିଷ ଭାଗ୍ୟ ସଜାଡୁଛ ଦାନକରି କୃପାକଣା ମାତ୍ର ।

****

# ମହାନଦୀ କ'ଣ ବୁଝେ ?

ମହାନଦୀ କ'ଣ ବୁଝେ ? କେଉଁ କବି ଖୋଜେ ତାର
ହଜିଗଲା ଚଇତର ଗୋପନ ମାଧୁରୀ

ଆଜି ତାର କେଉଁ କୂଳେ
ଝରିଯାଏ କେତେ ଶୋଷ ।
ଅବଶୋଷ, କେତେ ଅନୁରାଗ,
ଝରିଯାଏ କେତେ ଦୀର୍ଘଶ୍ୱାସ ।।

ଯୋଗ୍ରାଘାଟ ଆକାଶରେ ସଂଜ ନୁଏଁ, ବର୍ଷା ନୁଏଁ ।
ମୋ ଜୁଲାଇ ଏକା ଏକା ନୀରବ ଉଦାସ ।

କେଉଁ ଦୂର ଦିଗନ୍ତରୁ ଭାସି ଆସେ କାହାର ଏ
ନିଶବ୍ଦ ସଂଗୀତ ? ଯେ ସଂଗୀତ ସୁରଭିରେ
ପୂରିଯାଏ ପ୍ରତି ପ୍ରାଣକୋଷ ।

ମହନଦୀ କ'ଣ ବୁଝେ, ଯୌବନର ଉତୁରା ପ୍ରବାସ
କଟକ ସହର, ଆକାଶରେ ମେଘ ଏବଂ ମେଘ,
ମେଘେ ମେଘେ ଶାପଗ୍ରସ୍ତ ଯକ୍ଷର ଚୁମ୍ବନ ।

ପ୍ରତୀକ୍ଷାରେ କ୍ଲାନ୍ତ ଆଖି, ଦୀର୍ଘଦିନ, ତଥାପି ପ୍ରତୀକ୍ଷା,
ଯଦିଓ ଏକଥା ସତ ଅସମ୍ଭବ କାହାର ଆସିବା ।

ମଣିଷର ଭିଡ଼ ବଢ଼େ, ଭିଡ଼ କମେ,
ତଥାପି ପ୍ରତୀକ୍ଷା, ଟ୍ରାଫିକ୍ ପୋଲିସ
ହାତ ହୁଇସିଲ, କଲେଜ ସ୍କୋୟାର,
ସବୁଠିକ୍, ସବୁ ପ୍ରାତ୍ୟହିକ ।

ଗୋଟିଏ ଅବୁଝା ମନ । କାହାର ଠିକଣା ଖୋଜେ ?
କାହାର ଠିକଣା ? ଯେତେସବୁ ବୁଝା ଲୋକ
ସବୁଗୁଡ଼ା ଏଡ଼ିକି ଅବୁଝା ।।

ମହାନଦୀ କ'ଣ ବୁଝେ ? ଗତବଂଧା ପଥର ପଥୁକୀ,
ଗତବଂଦା ଗାତର ଗାୟକ ।
କ'ଣ ବୁଝେ ଦୁନିଆର ବିଚିତ୍ରଖବର ।

କିଛି ବୁଝେ ପ୍ରଜାପତି, ଚାଖିଛି ରକ୍ତର ସ୍ୱାଦୁ ।
ଚାଖିଛି ପ୍ରୀତିର ମଧୁ, ମୃତ୍ୟୁର ଶୀତଳ ବାସ୍ନା ।
ପାପର ପରମ ଶ୍ରଦ୍ଧା । ଜୀବନର ସହସ୍ର ବିସ୍ମୟ ।।

****

*ଲେଖକଙ୍କ 'କସ୍ତୁରବା ନଦୀର ଗଂଧ' (୧୯୮୦) କବିତା ସଂକଳନରେ ସ୍ଥାନିତ ।*

# ମାନନୀୟ ନୀଳଲୋହିତ ସିଂହଦେଓ ମହୋଦୟ..........

ଆସିଲ ସେଦିନ ଅତି ଆକସ୍ମିକ ଜୀର୍ଣ୍ଣ କୁଟୀରେ ମୋର
କବିତାରେ ଦେଲ ପ୍ରୀତି ସଂଭାଷଣ ଭୁଲି ପାରିବିନି କେବେ
ଗଭୀର ମମତା ଡ଼ୋରୀରେ ବାଂଧିଲ ଏଇ ଦାନ କବିପ୍ରାଣ
ବଂଧୁ ପରି ବଂଧୁ ହୋଇ ରହିଥିବା ଯାବତ ରହିବା ଭବେ ।୧।
ଗଢ଼ିଲି 'ନୂପୁର' ଥର ଥର କରି -ପୂରିଲା ଅନ୍ତର ମୋର
ସୁଖ ଅଛି ତହିଁ ଦୁଃଖ ଅଛି ତହିଁ ଅଛି କେତେ ଅନୁଭବ
ଅଛି ଇତିହାସ ଅଛି ପରଂପରା ଅଛି ମାନ ଅଭିମାନ
ହେଲେ ହେଁ ପ୍ରାଚୀନ, ସେଇ ମୂଲ୍ୟବାନ-ରାଜବଂଶ ଗଉରବ ।୨।
ସୁନାର ନୂପୁର ହାତେ ଧନ ଥିଲେ କିଣାଯାଇ ପାରେ କେତେ
ପୂର୍ବ ପୁରୁଷର କୀର୍ତ୍ତି ଉଜ୍ଜ୍ୱଳ ମର୍ଯ୍ୟାଦା ମିଳେ ନାହିଁ
ରାଜକୁଳ ବଧୂ ନୂପୁର ମହିମା ମୂର୍ଚ୍ଛିତ ଦିଗେ ଦିଗେ
ଜନଜନ ଗୋପ ଲକ୍ଷ୍ମୀ ସହିତ ତାହାର ତୁଳନା ନାହିଁ ।୩।
ଧନ୍ୟକବି ତବ 'ନୂପୁର' ରଚନା ଧନ୍ୟ ଆମ ସରସ୍ୱତୀ
ଦେଶ ଗଉରବ ଭାଷା ଗଉରବ ବାଡ଼ିଆଳ ଗଉରବ
ଜୟ ପରାଜୟ ସବୁର କାରଣ ରହିଛି ସାଇତା ହୋଇ
କବି ହିଁ ବୁଝିବ କବିର ହୃଦୟ ଯେତେଭାବ ପରାଭବ ।୪।

****

'ନୂପୁର' ଶ୍ରୀଯୁକ୍ତ ସିଂହଦେଓଙ୍କ କାବ୍ୟ ବିଶେଷ ।

# ଅଭିମତ

ଓଡ଼ିଶାର ସର୍ବ ବୃହତ୍ ନଦୀ 'ମହାନଦୀ' । ଏହାର ଭୀମକାନ୍ତ ରୂପ ଆକୃଷ୍ଟ କରିଛି ଓଡ଼ିଆ କବିମାନଙ୍କୁ, ସୁବିଧା ସୁଯୋଗ ଦେଖି କବିମାନେ ଏହାର ସୌନ୍ଦର୍ଯ୍ୟ କୁ ବର୍ଣ୍ଣନା କରିଛନ୍ତି ସେମାନଙ୍କୁ କାବ୍ୟ କବିତାରେ । କିନ୍ତୁ କବି ମାୟାଧର ମାନସିଂହଙ୍କ "ମହାନଦୀରେ ଜ୍ୟୋତ୍ସ୍ନା ବିହାର" ଏକ ଭିନ୍ନ ସ୍ୱାଦର କବିତା । ଏଥିରେ ମହାନଦୀର ପ୍ରାକୃତିକ ଦୃଶ୍ୟ ବର୍ଣ୍ଣିତ ହେବା ସହିତ ଅତୀତ ଉତ୍କଳ ପ୍ରତି ଗଭୀର ପ୍ରୀତି ପ୍ରକଟିତ ହୋଇଛି କବିଙ୍କର । ପରବର୍ତ୍ତୀ ସମୟରେ ଅନେକ କବି ପ୍ରଭାବିତ ହୋଇଛନ୍ତି କବି ମାନସିଂହଙ୍କ ଏହି କବିତା ଦ୍ୱାରା ।

କବି ଡ଼କ୍ଟର ବନମାଳୀ ବାରିକ୍ ସେହିପରି ମାନସିଂହଙ୍କ କବିତାର ଜଣେ ମୁଗ୍ଧ ପାଠକ । "ମହାନଦୀରେ ଜ୍ୟୋତ୍ସ୍ନା ବିହାର" କବିତା ଦ୍ୱାରା ବିଶେଷ ଭାବରେ ଆକର୍ଷିତ ହୋଇଛନ୍ତି ହାଇସ୍କୁଲରେ ପଢ଼ିଲାଦିନରୁ । କଟକରେ ଅବସ୍ଥାନ କରୁଥିବା ସମୟରେ ଯୋବ୍ରାଠାରେ ଉପଭୋଗ କରିଛନ୍ତି ମହାନଦୀର ଅପରୂପ ସୌନ୍ଦର୍ଯ୍ୟ । ଯାହା ଫଳରେ ସେ ସୃଷ୍ଟି କରନ୍ତି ମହାନଦୀ ଉପରେ ତାଙ୍କର ପ୍ରଥମ କବିତା ଏବଂ ତାହା ପ୍ରକାଶିତ ହୁଏ ତାଙ୍କର ପ୍ରଥମ କବିତାଗ୍ରନ୍ଥ "କସ୍ତୁରୀ ନଦୀର ଗଂଧରେ" ।

ପରବର୍ତ୍ତୀ ସମୟରେ ସେ ମହାନଦୀକୁ ଦେଖିଛନ୍ତି କଣ୍ଟିଲୋର ନୀଳମାଧମ ମନ୍ଦିର ବେଢ଼ାର ଏକ ମେଘକ୍ଳାନ୍ତ ପ୍ରଭାତରେ । ଅନେକ ଦିନ ଧରି ସୁପ୍ତ ଥିବା ତାଙ୍କ କବି ହୃଦୟରେ ପୁନଶ୍ଚ ସୃଷ୍ଟି ହୋଇଛି ମହାନଦୀ ପ୍ରତି ଅହେତୁକ ପ୍ରୀତି । ତେଣୁ ସେ ସୃଷ୍ଟି କରିଛନ୍ତି ତାଙ୍କର ଦ୍ୱିତୀୟ କବିତା । ସେ ଏଠାରେ ମନେ ପକାଇଛନ୍ତି କବି ଗୁରୁ କାଳିଦାସଙ୍କ ମେଘଦୂତ ଖଣ୍ଡକାବ୍ୟର ଅଭିଶପ୍ତ ଗନ୍ଧର୍ବ ନାୟକକୁ ଏବଂ ବିଦ୍ୟାପତି ଦ୍ୱାରା ପ୍ରତାରିତା ଲଳିତାର କରୁଣ କାହାଣୀକୁ ।

ତୃତୀୟ କାବ୍ୟଟି ତାଙ୍କର ସୃଷ୍ଟିହୁଏ ସୋନପୁର ବା ସୁବର୍ଣ୍ଣପୁରରେ-ଓଡ଼ିଆ ଅଧ୍ୟାପକ ସମ୍ମିଳନୀରେ ଯୋଗଦେବା ଅବସରରେ । ଜ୍ୟୋସ୍ନାସ୍ନାତ ରଜନୀରେ ନୌକାରେ ମହାନଦୀରେ ବିହାର କଲା ଅବସରରେ ତାଙ୍କର ମନେ ପଡ଼ିଛନ୍ତି କବି ମାନସିଂହ ଏବଂ ଅଧ୍ୟାପକ ଚିନ୍ତାମଣି ବେହେରା ଯେକି ତାଙ୍କୁ ପଢ଼ାଇଥିଲେ ମାନସିଂହଙ୍କ କବିତା ।

ପୁନଶ୍ଚ କବିଙ୍କର ମହାନଦୀ ସହ ଭେଟହୁଏ ହୀରାକୁଦରେ-ଏକ ଗୋଧୂଳି ଅପରାହ୍ନରେ, ଏକ ପାଖେ ନଦୀର ବନ୍ଧୁର, କର୍କଶ ରୂପ ଓ ଅନ୍ୟପଟେ ପୂର୍ଣ୍ଣଗର୍ଭା ସ୍ୱପ୍ନମୟ ଜଳରାଶି । ହୀରାକୁଦ ଆଧୁନିକ ଓଡ଼ିଶାର ଭାଗ୍ୟଲିପି । ଅପରପକ୍ଷେ ଭିଟାମାଟି ହରାଇଥିବା ବିସ୍ଥାପିତଙ୍କର ଦୁଃଖର ଦୀର୍ଘଶ୍ୱାସ । ଏହିପରି ଏକ ଭିନ୍ନାଭିମୁଖୀ ସରଳରେଖାର ଚିତ୍ର ଦେଖିବାକୁ ମିଳେ ଉକ୍ତ କବିତାରେ ।

ଶେଷଥର ପାଇଁ କବି ମହାନଦୀକୁ ଦେଖୁଛନ୍ତି ଚିପିଲିମା ଠାରେ ଦେବୀ ଘଣ୍ଟେଶ୍ୱରୀଙ୍କ ପୀଠରେ । ମହାନଦୀ କୂଳର ଦେବୀ ଘଣ୍ଟେଶ୍ୱରୀଙ୍କ ମହିମା ଚତୁଃଦିଗରେ ବିଦିତ । ଏହି ଅବସରରେ ମନେପଡ଼ିଛି କବିଙ୍କର ବାଲ୍ୟସ୍ମୃତି, ଫଗୁଣର ଶାଳବଣ ଆଉ ମହୁଲଫୁଲର ବାସ୍ନା ଆଉ ମକରର କୁକୁଡ଼ା ଲଢ଼େଇ । ଯାହାହେଉ କବିତା ଗୁଡ଼ିକ ସରସ, ସୁନ୍ଦର ଏବଂ ଚିନ୍ତାଦ୍ୟୋତକ । ମୋ ଭଳି ଅନେକ ପାଠକପ୍ରାଣକୁ ଏହା ସ୍ପର୍ଶ କରିବ ବୋଲି ମୋର ବିଶ୍ୱାସ ।

*ଅଧ୍ୟାପକ ପ୍ରଭାତ କୁମାର କର*

*ଓଡ଼ିଆ ବିଭାଗ, କୁଞ୍ଜ ବିହାରୀ କଲେଜ, ବାରଙ୍ଗ*



କବି ଓ ସମାଲୋଚକ ଡ଼କ୍ଟର ବନମାଳୀ ବାରିକ (୧୯୪୭)ଙ୍କ ଜନ୍ମ ବାଲେଶ୍ୱର ଜିଲ୍ଲାର ବସ୍ତା ନିକଟବର୍ତ୍ତୀ ଇଡ଼ିଦା ଗ୍ରାମରେ । ଫକୀର ମୋହନ କଲେଜରୁ ଅର୍ଥନୀତିରେ ଅନର୍ସ (୧୯୬୮) ବିଶ୍ୱଭାରତୀରୁ ଓଡ଼ିଆରେ ଏମ୍.ଏ. (ପ୍ରଥମ ଶ୍ରେଣୀରେ ପ୍ରଥମ : ୧୯୭୧), ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରୁ ପି.ଏଚ୍.ଡ଼ି.(୧୯୮୩) ଉପାଧି ଲାଭ । ୧୯୭୨ ମସିହାରୁ ବିଭିନ୍ନ ସରକାରୀ କଲେଜରେ ଅଧ୍ୟାପନା । ୨୦୦୩ ମସିହାରେ ରାଜଧାନୀ ଜୁନିଅର କଲେଜର ଅଧ୍ୟକ୍ଷ ଥାଇ ସ୍ୱେଚ୍ଛାକୃତ ଅବସର ଗ୍ରହଣ । ଓଡ଼ିଆ ଗବେଷଣା ପରିଷଦ (କଟକ) ଉତ୍କଳ ସାହିତ୍ୟ ସମାଜ (କଟକ) କେଦାରନାଥ ଗବେଷଣା ପରିଷଦ (ଭୁବନେଶ୍ୱର) ଅଖିଳ ଭାରତ ଓଡ଼ିଆ ଅଧ୍ୟାପକ ସମ୍ମିଳନୀ ଓ ଭାରତୀୟ ଲୋକସାହିତ୍ୟ କଂଗ୍ରେସର ଆଜୀବନ ସଭ୍ୟ

ପ୍ରକାଶିତ ଗ୍ରନ୍ଥ : କସ୍ତୁରୀ ନଦୀର ଗଂଧ (କବିତା) - ୧୯୮୦, ଅନ୍ୟ ଅଂଗୀକାର (କବିତା) -୧୯୮୮, ରାଗର ନାମ ଅନୁରାଗ (କବିତା) - ୧୯୮୮, ଶୃଙ୍ଗାର ତତ୍ତ୍ୱ ଓ ଓଡ଼ିଆ ରୀତିକାବ୍ୟ (ଗବେଷଣା ଗ୍ରନ୍ଥ) - ୧୯୯୨, ଗାନ୍ଧିଜୀ ଓ ଗଣଶିକ୍ଷା (୧୯୯୪), ଗାନ୍ଧିଜୀଙ୍କ ଦୃଷ୍ଟିରେ ପଞ୍ଚାୟତରାଜ- (୧୯୯୬), ଗବେଷଣା ବିଧି ଓ ଅନୁବାଦ କଳା (ସଂପାଦନା) - ୧୯୯୭, ଭଂଜୀୟ କାବ୍ୟ ଚର୍ଚ୍ଚାର ନୂତନ ପରଂପରା (ସମାଲୋଚନା) - ୨୦୦୫, ସମୟର ପ୍ରତିଧ୍ୱନି (କବିତା) - ୨୦୦୭, ମହାନଦୀ କ'ଣ ବୁଝେ (କବିତା) - ୨୦୦୮, ଗାନ୍ଧୀଙ୍କ ଅନନ୍ୟ ନେତୃତ୍ୱ (ଅନୁବାଦ) - ୨୦୦୮